# ପାରଳାର ଗଜପତି





ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର
ଓଡ଼ିଶା, ଭୁବନେଶ୍ୱର

# ପାରଳାର ଗଜପତି



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା

ଜନଶିକ୍ଷା ଭବନ, ୟୁନିଟ୍ - ୫

ଭୁବନେଶ୍ୱର - ୭୫୧୦୦୧

# ପାରଳାର ଗଜପତି


| | | |
|---|---|---|
| ଲେଖକ | : | ବିଷ୍ଣୁ ଚରଣ ମହାନ୍ତି |
| ପ୍ରଥମ ପ୍ରକାଶ | | ୨୦୦୨ |
| ପ୍ରକାଶକ | | ଶ୍ରୀ ଭୁବନାନନ୍ଦ ତ୍ରିପାଠୀ, ନିର୍ଦ୍ଦେଶକ,<br>**ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା**<br>ଜନଶିକ୍ଷା ଭବନ, ୟୁନିଟ୍-୫<br>ଭୁବନେଶ୍ୱର- ୭୫୧୦୦୧ |
| ପ୍ରଚ୍ଛଦ ଓ ଅଙ୍ଗସଜ୍ଜା | | ବ୍ରଜ କିଶୋର ଜେନା |
| ପ୍ରକାଶନ ସଂଖ୍ୟା | | ଏସ୍.ଆର.ସି. -୩୨୭-୨୮/୨୦୦୧-୦୨ |
| ଛାପା ସଂଖ୍ୟା | | ୨୦୦୦ |
| ମୁଦ୍ରଣ | | ଭୋଳାନାଥ ପ୍ରେସ୍<br>୧୨୦୧/୧୬୦୧, ବମିଖାଲ<br>ଭୁବନେଶ୍ୱର-୭୫୧୦୧୦ |
| ମୂଲ୍ୟ | | ଟ. ୪.୦୦ |


## PARALARA GAJAPATI


| | | |
|---|---|---|
| Writer | | Bishnu Charana Mohanty |
| First Edition | | 2002 |
| Published by | | Sri Bhubanananda Tripathy, Director,<br>State Resource Centre for Adult Education,<br>Orissa, Janasiksha Bhawan, Unit-5<br>Bhubaneswar - 751001 |
| Cover & Layout Design | : | Braja Kishore Jena |
| Publication No. | | SRC -327-28/2001-02 |
| No. of Copies | | 2000 |
| Printed at | | Bholanath Press<br>120/1601, Bomikhal<br>Bhubaneswar- 751010 |
| Price | | Rs. 4.00 |

# ତମ ଶାସନ ତ ରାମ ରାଜ୍ୟ

ଆଜିକୁ ତେଷଠି ବରଷ ତଳର କଥା । ନୂଆ ଓଡ଼ିଶା ପ୍ରଦେଶ । ସେଇଠି କଂଗ୍ରେସ ମନ୍ତ୍ରୀମାନେ ଶାସନ କରୁଥାଆନ୍ତି । ମାର୍ଚ୍ଚ ମାସରେ ପୁରୀ ଜିଲ୍ଲା ଡେଲାଙ୍ଗରେ ଗାନ୍ଧିସେବାସଂଘର ବରଷିକିଆ ସଭା ବସିଲା । ଭାରତର ସବୁଆଡ଼ୁ ଗାନ୍ଧି ମହାତ୍ମାଙ୍କୁ ମିଶାଇ ସବୁ ବଡ଼ ବଡ଼ ନେତାମାନେ ସେଠାକୁ ଆସିଥାଆନ୍ତି । କାମ କେଉଁଟା ଛୋଟ ନୁହେଁ, କେଉଁଟା ଅପମାନଜନକ ନୁହେଁ, ଏଇକଥା ଲୋକମାନଙ୍କୁ ମହାତ୍ମା ଗାନ୍ଧି କହିଥାଆନ୍ତି । ସେ ମଧ ଛୁଆଁ ଅଛୁଆଁ ଭେଦଭାବ ରଖୁ ନଥିଲେ ।

ସେଠାରେ ଗାତ ପାଇଖାନା, ଉଠା ପାଇଖାନା ସବୁ ତିଆରି ହୋଇଥାଏ । ଆମ ରାଇଜର ବଡ଼ ବଡ଼ ଲୋକ ପ୍ରତିଦିନ ଝାଡ଼ୁ ଧରି ଦି'ବେଳା ସଫେଇ କାମ କଲେ । ଏଥିରେ ମହାତ୍ମା ଗାନ୍ଧି ଖୁସି ହୋଇଗଲେ । ସେଇଠି ମାର୍ଚ୍ଚ ଏକତିରିଶ ତାରିଖ ଗୁରୁବାର ଏଗାରଟା ବେଳେ ଜଣେ ରାଜା ଗାନ୍ଧିଜୀଙ୍କୁ ଦେଖାକରିବାକୁ ଆସିଲେ । ଗାନ୍ଧିଜୀ ରହୁଥିବା ଜାଗା ତାଙ୍କ ରାଇଜ ଇଲାକାରେ । ସେଦିନ ଗାନ୍ଧିଜୀ ମଉଜ ରହିଥାଆନ୍ତି । ରାଜା ତାଙ୍କୁ ଏଗାରଶହ ଷୋହଳ ଟଙ୍କାର ଏକ ଥଳି ଭେଟି ଦେଲେ । ତାଙ୍କୁ ଗାନ୍ଧିଜୀ ଘଣ୍ଟାଏ କାଳ ସାକ୍ଷାତ ଦେଲେ । ରାଜା ଯାହା ଜାଣିବାକୁ ଚାହୁଁଥିଲେ ଗାନ୍ଧିଜୀଙ୍କୁ ପଚାରୁଥିଲେ । ଗାନ୍ଧିଜୀ ମଉନ ଥିବାରୁ ଉତ୍ତର, କାଗଜରେ ଲେଖି ଦେଉଥାଆନ୍ତି । ଲୋକେ ସେତେବେଳେ ଜମିଦାରୀ ଉଠିଯିବାକୁ ଦାବି କରୁଥାଆନ୍ତି । ଗାନ୍ଧିଜୀଙ୍କ ମତ ପଚାରିବାରୁ ସେ କହିଲେ ଜମିଦାରୀ ଉଠିବା ନ ଉଠିବା ରାଜା ଓ ଜମିଦାରଙ୍କ ହାତରେ । ଭଲ କାମ କଲେ ଲୋକେ ତାଙ୍କୁ ରଖିବେ, ନହେଲେ ରହି ପାରିବେ

ନାହିଁ । ରାଜା କହିଲେ ରାଇଜ ତ ଆପଣ ଦେଖିଲେ । ମୋତେ ଆଉକଣ କରିବାକୁ ହେବ ? ଖଣ୍ଡେ କାଗଜରେ ମହାତ୍ମା ଲେଖିଦେଲେ 'ତମ ଶାସନ ତ ରାମ ରାଜ୍ୟ' ।

ଏଇ ରାଜା ଜଣକ ଥିଲେ ପାରଳାଖେମୁଣ୍ଡିର ରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ । ଓଡ଼ିଶା ଓ ଗଞ୍ଜାମ ଜିଲ୍ଲାର ସବୁଠାରୁ ବଡ଼ ଜମିଦାରୀ ତାଙ୍କର ଥିଲା । ଓଡ଼ିଶା ପ୍ରଦେଶ ଗଢ଼ାହେବାକୁ ସେ ଅନେକ ପରିଶ୍ରମ କରିଥିଲେ ।

କୃଷ୍ଣଚନ୍ଦ୍ରଙ୍କ ବାପା ଥିଲେ ଗୌରଚନ୍ଦ୍ର ଗଜପତି । ସେ ଥିଲେ ପୁରୀ ଗଜପତି ବଂଶର । ପ୍ରଜାମାନଙ୍କର ମଧ୍ୟ ସେ ଥିଲେ ଅତି ଆପଣାର । ପ୍ରତିଦିନ ରାଜସଭାରେ ବସି ପ୍ରଜାମାନଙ୍କର ହାରି ଗୁହାରି ଶୁଣୁଥିଲେ । ସବୁର ବିଚାର ସରିବା ପରେ ସେ ଖାଇବାକୁ ଉଠୁଥିଲେ ।

ରାଜ୍ୟରେ ସେ ହାଇସ୍କୁଲ ଓ କଲେଜ ବସେଇଥିଲେ । ସହରରେ ଗୋଟିଏ ବଡ଼ ଧର୍ମଶାଳା ତିଆରି କରେଇ ଥିଲେ । ଅତିଥି ଅଭ୍ୟାଗତ ଆସିଲେ ତାଙ୍କୁ ତିନିବେଳା ଭୋଜନ ସାଙ୍ଗକୁ ଦକ୍ଷିଣା ଦିଆଯାଉଥିଲା । ଏପରିକି ସାଧାରଣ ଭିକାରିଟିଏ ମଧ୍ୟ ବାଦ୍ ପଡୁ ନଥିଲା । ରାଜା ଓ ତାଙ୍କ ପରିବାରର ଅନ୍ୟମାନେ ଏଥିପାଇଁ ଖୁସିରେ ଦାନ କରୁଥିଲେ ।

ଅଳ୍ପ ବୟସରେ ରାଜା ମରିଗଲେ । ସେତେବେଳକୁ ପୁଅ କୃଷ୍ଣଚନ୍ଦ୍ରଙ୍କୁ ମୋଟେ ତେର ବରଷ । ପିଲାଦିନେ ସେ ଘରେ ରହି ପାଠ ପଢ଼ିଥିଲେ । ଖୁବ୍ ନାମଜାଦା ପଣ୍ଡିତ ଓ ସାହେବ ତାଙ୍କୁ ଓଡ଼ିଆ, ତେଲଗୁ, ଇଂରେଜ ପାଠ ପଢ଼ାଇ ଥାଆନ୍ତି । ତା'ପରେ ସେ ମାନ୍ଦ୍ରାଜରେ ରହି ପାଠ ପଢ଼ିଲେ । ରାଜା ଗୌରଚନ୍ଦ୍ର ମରିବା ବେଳକୁ କୃଷ୍ଣଚନ୍ଦ୍ର ପିଲା । ଏଣୁ ସରକାର ରାଜ୍ୟ ଚଳେଇବାକୁ ନିଜ ହାତକୁ ନେଲେ ।

## ରାଜଗାଦି ଗ୍ରହଣ

ମାନ୍ଦ୍ରାଜ କଲେଜରେ ପାଠ ସରିବା ଆଗରୁ ଯୁବରାଜ କୃଷ୍ଣଚନ୍ଦ୍ରଙ୍କୁ ଅଠର ବରଷ ହେଲା । ସରକାର ତାଙ୍କୁ ରାଜଗାଦି ଫେରାଇ ଦେଲେ । ସେ ପାରଳାଖେମୁଣ୍ଡିରେ ଆସି ରହିଲେ । ରାଜକାର୍ଯ୍ୟ ବୁଝିଲେ । ତାଙ୍କ ବାପା ଖଜଣାଖାନାରେ ପଚିଶିଲକ୍ଷ ଟଙ୍କା ରଖି ଯାଇଥାଆନ୍ତି । ଏଇ ଟଙ୍କା ରାଜ୍ୟର ମଙ୍ଗଳ ପାଇଁ ଖରଚ କରିବାକୁ ସେ ପ୍ରତିଜ୍ଞା କଲେ ।

ରାଜା ହେବାର ଅଳ୍ପଦିନ ପରେ ତାଙ୍କର ବାହାଘର ହେଲା । ସେ ଖରସୁଆଁ ରାଜଜେମାଙ୍କୁ ବିଭା ହୋଇଥିଲେ । ସ୍ତ୍ରୀ ମରିଯିବା ପରେ ରାଜା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ପରି ଆଉ ଘର ସଂସାରରେ ବାନ୍ଧି ହେଲେ ନାହିଁ। ସେବା କରିବାକୁ ଅଣ୍ଟା ଭିଡ଼ି ବାହାରି ପଡ଼ିଲେ ।

ଜଣେ ସାହେବ ଥିଲେ । ତାଙ୍କ ନା ଟେଲର । ସେ ଖୁବ୍ ଜାଣିବାର ମଣିଷ । ତାଙ୍କୁ ସେ ନିଜର ଦେୱାନ କଲେ ।

## ଚାଷର ସୁବିଧା

ରାଜା ହୋଇ କୃଷ୍ଣଚନ୍ଦ୍ର ସବୁ ବଡ଼ ସାନ ଗାଁଗୁଡ଼ିକ ଆଗ ଦେଖି ଆସିଲେ । ଲୋକଙ୍କ ସାଙ୍ଗରେ ଦୁଃଖସୁଖ ହେଲେ । ତାଙ୍କର ଭଲମନ୍ଦ ପଚାରି ବୁଝିଲେ । ଲୋକେ ତ ଚାଷୀ । ସେମାନଙ୍କର ଯାହା ରୋଜଗାର ସେଇ ଚାଷକାମରୁ । ଚାଷ କାମପାଇଁ ଯେମିତି କେଉଁଠି ପାଣିର ଅଭାବ ନ ହୁଏ ସେ କଥା ରାଜା ଆଗ ଦେଖିଲେ । ନଈରୁ ପାଣି ଉଠେଇ ଜମିରେ ମଡ଼େଇବାର ସୁବିଧା କରେଇଲେ । ସବୁ କିଆରିରେ ପାଣି ମାଡ଼ିଲା। ବରଷ ତମାମ ପାଣି ସୁବିଧା । ରାଜ୍ୟରେ ଅନେକ ବଡ଼ ବଡ଼ ପୋଖରୀ ଥାଏ । ତାକୁ ଲୋକେ ସାଗର ବୋଲି କହନ୍ତି । ନାଆଁ ହେଉଛି

ରାମସାଗର, ସୀତାସାଗର, ଲକ୍ଷ୍ମଣସାଗର, କୃଷ୍ଣସାଗର, ରାଧାସାଗର, ଗଜପତିସାଗର । ଏସବୁ ବାପ ଅଜାଙ୍କର କୀର୍ତ୍ତି । ତାକୁ ସେ ବେଶି ଗହୀରା କରି ଖୋଳେଇଲେ । ପାଣି ଯାଉଥିବା ମାହାରାଗୁଡ଼ିକ ମଧ୍ୟ ଗହୀରିଆ କରେଇଲେ । ପ୍ରତ୍ୟେକରେ ଲକ୍ଷେ ଟଙ୍କା ଲେଖାଁ ଖରଚ କଲେ । କାମ ଦେଖିବାକୁ ନାମଜାଦା ସାହେବୀ ଇଂଜିନିୟର ରଖିଲେ । ନିଜେ ମଧ୍ୟ ଆଉ କେତୋଟି ସାଗର ନୂଆ କରି ଖୋଳେଇଲେ । ସୁବିଧାରେ ପାଣି ମିଳିବାରୁ ବହୁତ ଗୁଡ଼ିଏ ଜମି ଦୋଫସଲି ହୋଇଗଲା । ବରଷ ତମାମ ପାଣି ଯୋଗାଇବାକୁ ବଡ଼ ସାନ ହୋଇ ଗୁଡ଼ିଏ ଜଳାଧାର ରହିଲା । ଚାଷୀର ଚାଷକାମ ଭଲରେ ହେଲା । ରାଜା ନିଜେ ବି ଚାଷ କାମରେ ଲାଗିଲେ । ଆଗରୁ ରାଜ୍ୟରେ କୃଷି ଫାର୍ମ ଥିଲା । ଚାଷ ପାଇଁ ସେ ଆଉ ଗୋଟିଏ ଫାର୍ମ କଲେ । କୃଷି ପାଠରେ ପାସ କରି ଆସି ଏଇ ଫାର୍ମ ସବୁରେ ଲୋକେ କାମ କଲେ । ପାରଳାଖେମୁଣ୍ଡି କଲେଜରେ ମଧ୍ୟ କୃଷି ପାଠ ପଢ଼େଇବାକୁ ସୁବିଧା କରେଇଲେ ।

**ଜାତିଆ ବିହନ ଅଣା**

ରାଜା ଜାତି ଜାତିକା ବିହନ ଅନ୍ୟ ରାଜ୍ୟରୁ ମଗେଇଲେ । ମଞ୍ଜି ନିଜ ଫାର୍ମରେ ଉତାରିଲେ । ରୟତମାନଙ୍କୁ ଡକାଇ ଆଣି ଚାଷ ଦେଖାଇଲେ । କେମିତି ଫସଲ ଅଧିକ ଓ ଭଲ ହେବ ନିଜେ ଚାଷ କରି ଦେଖାଇଲେ । ଫଳ ହେଲା ଚାଷୀମାନେ ନୂଆ କିସମର ବିହନ ଆଡ଼କୁ ମୁହାଁଇଲେ । ଦେଖିଲେ ସେଥିରେ ଫଳ ଭଲ ହେଉଛି ।

ମାନ୍ଦ୍ରାଜରେ କୋଏମ୍ବାଟୁର ସହର । ସେଇଠି କୃଷି କଲେଜ ଥାଏ । ସେଠାରୁ ରାଜା ନାନା କିସମର ଆଖୁ, ଜଡ଼ାମଞ୍ଜି, କପାମଞ୍ଜି, ଅଳସି



(ରାଶି ଜାତିର), ଡ଼ାଲି ଜାତୀୟ ବିହନ ମଗେଇଲେ । ବାଡ଼ି ବଗିଚାରେ ଚାଷ ପାଇଁ ଫୁଲକୋବି, ବନ୍ଧାକୋବି, ଉଲକୋବି, ଲଙ୍କା, ବିଲାତି ବାଇଗଣ, ବିଲାତିଆଳୁ, ମଟର, ଗାଜର, ମୂଳା, ସାଲଗମ, ନାନା ଜାତିର ବିନ୍ ଓ ଶିମ୍ବର ବିହନ ନାନା ଆଡ଼ୁ ମଗେଇଲେ । ରାଜା ନିଜେ ଚାଷ କଲେ । ଫଳ ଦେଖାଇ ଲାଭ ଆଶାରେ ଅନ୍ୟମାନଙ୍କ ହାତରେ ସେଇ ବିହନର ଚାଷ କରାଇଲେ । ବଡ଼ ସାନ ସବୁ ଚାଷୀଙ୍କୁ ଗାଁ'ରୁ ଡକେଇ ଆଣି ଏସବୁ ଦେଖାଇଲେ ଓ ଚାଷ କଥା ବୁଝେଇଲେ ।

**ଚାଷରେ ଲାଭ**

ଦି'ପଇସା ଅଧିକା ଲାଭ କେଉଁ ଫସଲ କଲେ ମିଳିବ ତାହା ନିଜେ କରି ଦେଖାଇଦେଲେ । ମାଗଣାରେ ସେମାନଙ୍କୁ ଚାରା ଓ ବିହନ ଦେଲେ । ଦେଖୁ ଦେଖୁ ଏସବୁ ନୂଆ କିସମର ପନିପରିବା ଚାଷ ସବୁ ଗାଁକୁ ମାଡ଼ିଗଲା । ପାଣି ତ ସହଜରେ ଆଗରୁ ମିଳୁଥିଲା । ଜାତିଆ ବିହନ

ଆସିବାରୁ ବେଶି ଚାଷ ହେଲା । ସବୁ ସମୟରେ ପନି ପରିବା ଚାଷ ହେଲା । ବରଷ ତମାମ ଶସ୍ତାରେ ପନିପରିବା ଲୋକଙ୍କୁ ମିଳିଲା । ଚାଷୀ ହାତକୁ ଭଲ ଦି'ପଇସା ଆସିଲା । ଖାଉଟିମାନେ ବି ଭଲ ଜିନିଷ ପାଇଲେ ।

ଏହାଛଡ଼ା ନୂଆ ଜାତିର ଆଖୁ ଆସି ଚାଷ ହେଲା। ସେ ଆଖୁରୁ ବେଶି ରସ ବାହାରିଲା । ଅନ୍ୟ ଚାଷୀମାନଙ୍କୁ ଡକେଇ ଆଣି ଏହା ଦେଖାଇଲେ । ଗୁଡ଼ କେମିତି ଭଲ ଦାନା ବାନ୍ଧିବ, ସଫା ହୋଇ ବାହାରିବ, ତା'ର ଉପାୟ ବାହାର କରି ଅନ୍ୟମାନଙ୍କୁ ବତେଇଲେ । ଶୀଘ୍ର ଖରାପ ନହୋଇ ବେଶିଦିନ ରହିଲେ ଗୁଡ଼ ବିକ୍ରିରେ ଭଲ ପଇସା ମିଳିବ । ଚାଷୀ ହାତକୁ ଅଧିକ ଦି'ପଇସା ଆସିବ । ସେଇଥିପାଇଁ ଫାର୍ମରେ ଉପାୟ ବତେଇଲେ । ଚାଷର ଭଲ ପାଇଁ କାମ କଲାରୁ ଚାଷୀକୁ ଦି'ପଇସା ମିଳିଲା । ସେ ଜଳକର ଦେବାକୁ ଖୁସିରେ ରାଜି ହୋଇଗଲା । ଖଜଣା ତ ଆଗରୁ ଦେଉଥିଲା । ଏତେଗୁଡ଼ିଏ ଜଳାଧାର ତିଆରି ଓ ଦେଖାରଖାରେ ଯାହା ଖରଚ ହେଉଥିଲା ଏବେ ରୋଜଗାର ତା'ଠାରୁ ଢ଼େର ବେଶି ହେଲା ।

## ଜାତିଆ ଗୋରୁଗାଈ ପାଳନ

ଭଲ ଚାଷକାମରେ ଚାଷୀର ବଢ଼ିଆ କିସମର ବଳଦ, ଗାଈ, ଷଣ୍ଢ ଓ ଗୁହାଳ ଘର ନିହାତି ଦରକାର । ସେଇଥିପାଇଁ ରାଜା, ରାଜ୍ୟ ବାହାରୁ ଭଲ ଜାତିଆ ଷଣ୍ଢ, ଗାଈ, ମଇଁଷି ମଗେଇ ଆଣିଲେ । ନିଜେ ଏ ପ୍ରକାରର ଗାଈ ବଳଦ ମଇଁଷି ବି ରଖିଲେ । ଚାଷୀମାନଙ୍କୁ ନିଜ ଫାର୍ମକୁ ଡକେଇ ଆଣିଲେ । ନୂଆ ଜାତିଆ ବଳଦ, ପୋଢ଼, କିପରି ବେଶି କାମିକା, ଗାଈ ମଇଁଷି କେମିତି ବେଶି ଦୁଧ ଦେଉଛନ୍ତି, ଏସବୁ ସେମାନଙ୍କର

ଆଖି ଆଗରେ ଦେଖାଇଦେଲେ । ପ୍ରତି ଦୁଇ ବରଷରେ ନିଜ ଫାର୍ମର ଜାତିଆ ଗୋରୁ ମଇଁଷିମାନଙ୍କୁ ନିଲାମ କଲେ । ସେମାନଙ୍କୁ ନେଇ ଶସ୍ତାରେ ରଇତ ପାଖରେ ପହଞ୍ଚାଇଲେ । ପୁଣି କେମିତିଆ ଗୁହାଳ କରି ରଖିଲେ ସେମାନେ ସଫା ସୁତୁରା ଓ ନିରୋଗ ରହିବେ, ଜାତିଆ ବାଛୁରୀ ହେବ ଓ ରୋଜଗାର ବଢ଼ିବ, ଏସବୁ କଥା ଦେଖାଇବାକୁ ନିଜ ଆଦର୍ଶ ଗୁହାଳକୁ ଚାଷୀମାନଙ୍କୁ ଡକାଇ ଆଣିଲେ ।

**ନିଜ ଫାର୍ମରେ କମ୍ପୋଷ୍ଟ ଖତ ତିଆରି**

ଫସଲ କଟା ହେଲାପରେ କିଆରିରେ ଅଦରକାରୀ ଜିନିଷ ପଡ଼ିଥାଏ । ସେସବୁ ପଚି ସଢ଼ି ଦୁର୍ଗନ୍ଧ ହୁଏ । ତାହାଦ୍ୱାରା ରୋଗ ଜୀବାଣୁ ଜାତ ହୋଇଥାଏ । ସେ ସବୁ ଗାତ ଖୋଳି ପୋତିଦେଲେ ତାହା ଭଲ କିସମର ଖତ ହେବ । ଚାଷରେ ଲାଗିବ । ଏକଥା ସେ ବୁଝାଇଲେ । ଅନ୍ୟମାନେ ସେହିପରି କଲେ । ନିଜ ବାଡ଼ି ବଗିଚା କ୍ଷେତମାନଙ୍କରେ କମ୍ପୋଷ୍ଟ ଖତ ତିଆରି କରି ନିଜ କାମରେ ଲଗାଇଲେ । କୃଷି ପ୍ରତି ତାଙ୍କର ଆଦର ସବୁରି ମନକୁ ପାଇଲା । ଚାଷୀମାନେ ତାଙ୍କ ଫାର୍ମକୁ ଆସି ଚାଷବାସ ହାଲଚାଲ ସବୁବେଳେ ତାଙ୍କଠାରୁ ବୁଝୁଥିଲେ । ସେ ଗୋଟିଏ ଡଗ କହୁଥିଲେ-

*''ଚାଷୀ ପାଦ ଯଦି ପଡ଼ିବ*
*ଜମିରେ ଫସଲ ବଢ଼ିବ ।''*

ଏହାର ଅର୍ଥ ହେଲା ଚାଷୀ ପ୍ରତିଦିନ ନିଜ ଜମିକୁ ଯିବ । ନିଜେ ଚାଷ ଖବର ବୁଝିବ । ତେବେ ଜମିରେ ଫସଲ ବଢ଼ିବ । ତା'ର ଉନ୍ନତି ହେବ । ଖାଲି ସେ ଏହା କହୁନଥିଲେ, ନିଜେ ଏହା କରି ଦେଖାଉଥିଲେ ।

ଭାରତ ବର୍ଷରେ କୃଷିର ଉନ୍ନତି ପାଇଁ ଇଂରେଜ ସରକାର ଗୋଟିଏ କମିଶନ ବସେଇଲେ । ପାରଳା ରାଜା ସେତେବେଳେ ମାନ୍ଦ୍ରାଜ ଲାଟସଭାର ମେମ୍ବର । ଚାଷରେ ପରାମର୍ଶ ଦେବାକୁ ସେ ଯୋଗ୍ୟ ଲୋକ ବୋଲି ତାଙ୍କୁ କମିଶନର ସଭ୍ୟଭାବେ ନିଆଗଲା । ସେଥିରେ ସେ ବିନା ବେତନରେ କାମ କଲେ । ହେଲେ ତାଙ୍କୁ ଗସ୍ତ ଖରଚ ଦିଆଗଲା । ସେ ଟଙ୍କା ନେବାକୁ ମାନହାନି ଭାବିଲେ । ସେତେବେଳେ ଓଡ଼ିଶାରେ କୃଷି କଲେଜ ନଥାଏ । ମାନ୍ଦ୍ରାଜରେ କୃଷି କଲେଜ ଥାଏ କୋଏମ୍ବାଟୁରରେ । ଟଙ୍କା ପାଇ ସେଇ କଲେଜକୁ ଦାନ କରିଦେଲେ । ସେଇଠି କୃଷି ଗବେଷଣାରେ ତାହା ଖରଚ ହେବ । ଓଡ଼ିଶାରୁ ପିଲା ଗଲେ ସେଠାରେ ତାଙ୍କୁ ମାଗଣାରେ ପଢ଼ିବାକୁ ସୁବିଧା ଦିଆଯିବ । ତାହାହିଁ ହେଲା । ଏଠାରୁ ପିଲାଏ ଯାଇ ସେଇଠି କୃଷି ବିଜ୍ଞାନ ପଢ଼ିଲେ । ଓଡ଼ିଶାର ନାଁ ହେଲା ।

**ଶିକ୍ଷା ଅନୁଷ୍ଠାନ ଗଢ଼ା :**

ପାରଳାଖେମୁଣ୍ଡିରେ ହାଇସ୍କୁଲ ଓ କଲେଜ ଥିଲା । ରାଜା କୃଷ୍ଣଚନ୍ଦ୍ର ଝିଅପିଲାମାନଙ୍କ ପାଇଁ ମାଇନର ସ୍କୁଲଟିଏ ଖୋଲିଲେ । ବାଳିକା ସ୍କୁଲ ସିନା ଖୋଲିଲା ହେଲେ ଝିଅ ପିଲାଏ ଆସିବା ଦରକାର । ସେଥିପାଇଁ ସେ ସଭାଟିଏ କରି ଅଭିଭାବକମାନଙ୍କୁ ଡକାଇଲେ । ଝିଅମାନଙ୍କୁ ପାଠ ପଢ଼ିବାପାଇଁ ଛାଡ଼ିବାକୁ ସେମାନଙ୍କୁ ବୁଝାଇଲେ । ସେମାନେ ପଢ଼ିବାକୁ ଆସିଲେ ଓଡ଼ିଶାର ଉନ୍ନତି ହେବ ବୋଲି କହିଲେ । ପିଲାଏ ଯେପରି ସୁବିଧାରେ ସ୍କୁଲକୁ ଆସିପାରିବେ ତା'ର ବ୍ୟବସ୍ଥା କରିଦେଲେ । ପାଠ ପଢ଼ା ସାଂଗକୁ ସିଲେଇ, ବୁଣାବୁଣି କରିବା କାମ ମଧ୍ୟ ପିଲାଙ୍କୁ ଶିଖାଇବାର ସୁବିଧା କରାଗଲା । ଏହିପରି ଭାବେ ବାଳିକାମାନଙ୍କ ଶିକ୍ଷା ପ୍ରତି ସେ ମନ ଦେଇଥିଲେ ।



ସେତେବେଳେ ପାରଳାଖେମୁଣ୍ଡି କଲେଜରେ ଆଇ.ଏ. ଶ୍ରେଣୀ ଯାଏ ପାଠଥିଲା । ରାଜା କୃଷ୍ଣଚନ୍ଦ୍ର ବି.ଏ. ଶ୍ରେଣୀ ଖୋଲାଇଲେ । ସେ ଜାଣିଥିଲେ ଭଲ ଶିକ୍ଷକ କେବଳ ବଢ଼ିଆ ଛାତ୍ର ତିଆରି କରିପାରିବେ । ସେଥିପାଇଁ ମାନ୍ଦ୍ରାଜରୁ ନାମଜାଦା ଶିକ୍ଷକ ସେ ତାଙ୍କ କଲେଜକୁ ଅଣେଇଲେ । ଇଂରେଜି ସାହିତ୍ୟରେ ସେକ୍ସପିୟର ଜଣେ ନାମଜାଦା ଲେଖକ । ତାଙ୍କ ନାଟକ ବି.ଏ. ଶ୍ରେଣୀରେ ପଢ଼ାଯାଉଥାଏ । ସେତେବେଳେ ପୂରା ଭାରତରେ ତାକୁ ପଢ଼ାଇବାକୁ ଜଣେ ଅଧ୍ୟାପକଙ୍କ ନାମ ଡାକ ଥାଏ । ସେଇ ଉଇବଂଲରସାହେବଙ୍କୁ ଇଂରେଜି ପଢ଼ାଇବାକୁ ସେ ନିଜ କଲେଜରେ ରଖିଲେ ।

**ଖେଳର ପ୍ରସାର**

ଖାଲି ପାଠ ପଢ଼ାହେଲେ ତ ସବୁ ହେଲା ନାହିଁ । ପାଠ ସାଙ୍ଗକୁ ଖେଳକୁଦରେ ନାଁ କରିବା ଦରକାର । ରାଜା ନିଜେ ଜଣେ ଭଲ କ୍ରିକେଟ୍

ଖେଳାଳିଥିଲେ । ଖେଳ ଶିଖାଇବାକୁ ସେ ମାନ୍ଦ୍ରାଜରୁ ବଛା ବଛା କୋଚ (ଖେଳ ଶିକ୍ଷକ) ଆଣିଲେ । ସେମାନେ ପିଲାଙ୍କୁ ତାଲିମ ଦେଲେ । ରାଜା ନିଜେ ମଧ୍ୟ ପିଲାମାନଙ୍କ ସାଙ୍ଗରେ ଯାଇ ଖେଳିଲେ । କଲେଜ ଟିମ୍ ରାଜ୍ୟ ବାହାରକୁ ଯାଇ ଖେଳିଲେ । ଯେଉଁ ପିଲା ଭଲ ଖେଳିଲା, ପାରଳାଖେମୁଣ୍ଡିର ଟେକ ରଖିଲା ତାକୁ ରାଜା ସାହାଯ୍ୟଦେଲେ । ପାଠପଢ଼ା ସରିବାପରେ ନିଜ ଅଫିସରେ ଚାକିରି ମଧ୍ୟ ଦେଲେ ।

ରାଜା କୃଷ୍ଣଚନ୍ଦ୍ର ଟେନିସ ଓ ଗଲ୍ଫ ମଧ୍ୟ ଖେଳନ୍ତି । ଅବସର ମିଳିଲେ ଓ ଛୁଟିଦିନ ମାନଙ୍କରେ ସବୁ ପିଲାମାନେ ଯେପରି ଖେଳରେ ମାତିବେ ଏଥିପାଇଁ ସେ ନିଜେ ପଡ଼ିଆକୁ ଯାଇ ଖେଳ ଦେଖୁଥିଲେ । କେଉଁ ଖେଳ କେଉଁଦିନ ହେବ, କିଏ କିଏ ଖେଳିବେ, କିଏ କାହା ସାଙ୍ଗରେ ଖେଳିବେ ଏସବୁର ତାଲିକା ସେ ନିଜେ କରୁଥିଲେ । ରାଜା ଘରେ କୌଣସି ଆନନ୍ଦ ଉତ୍ସବ ହେଲେ କ୍ରିକେଟ୍ ଖେଳାଳିମାନଙ୍କୁ ଆଦରରେ ସେଠାକୁ ଡକାଯାଉଥିଲା । କ୍ରିକେଟ୍ ମ୍ୟାଚ ଖେଳିବାର ଯୋଗାଡ଼ ହେଉଥିଲା । ମାନ୍ଦ୍ରାଜର ବଛା ବଛା କ୍ରିକେଟ୍ ଟିମ୍ ନିମନ୍ତ୍ରଣ ପାଇ ଆସି ଖେଳ ଦେଖାଉଥିଲେ । ଏହା ତାଙ୍କ ନିଜକଲେଜର ଖେଳାଳିମାନଙ୍କର ମାନ ବଢ଼େଇବାରେ ସାହାଯ୍ୟ କରୁଥିଲା । ପାରଳାଖେମୁଣ୍ଡିର କ୍ରିକେଟ୍ ଟିମ୍ ଏହା ଫଳରେ ଖୁବ୍ ନାଁ କମେଇଲା । ରାଜା "ନିଖିଳ ଭାରତି କ୍ରିକେଟ୍ କ୍ଲବ" ଓ ବିଲାତର "ଏମ.ସି.ସି. କ୍ଲବ"ର ଆଜୀବନ ସଭ୍ୟ ଥିଲେ ।

### ପାଠ ପଢ଼ାରେ ସାହାଯ୍ୟ

ସେତେବେଳେ ପାରଳାଖେମୁଣ୍ଡି ମାନ୍ଦ୍ରାଜ ପ୍ରଦେଶରେ ଥାଏ । ଗଞ୍ଜାମ ଜିଲ୍ଲାର ବଡ଼ ବଡ଼ ସରକାରୀ ହାକିମ ହୁକୁମା ସମସ୍ତେ ତେଲୁଗୁ, ନହେଲେ

ତାମିଲ । ଓଡ଼ିଆ ଲୋକେ ଗରିବ । ସେମାନଙ୍କର ରୋଜଗାର ମଧ୍ୟ କମ୍ । ସେଇଥିପାଇଁ ସେମାନେ ବେଶି ପାଠ ପଢ଼ିପାରୁ ନଥିଲେ । ରାଜା ସବୁ ଓଡ଼ିଆପିଲାଙ୍କ ପାଇଁ କଲେଜ ଦରମା ଅଧା କରିଦେଲେ । ଯେଉଁମାନେ ଭଲ ପଢ଼ିଲେ ତାଙ୍କୁ ପୂରା ଦରମା ଛାଡ଼ ହେଲା । ହଷ୍ଟେଲ୍‌ରେ ରହିଲେ ଅଳ୍ପ ଖରଚ ପଡୁଥାଏ । ରାଜା, ରାଣୀ, ରାଣୀମା ଏମାନେ ଖାଇବା ପିଇବା ପାଇଁ ବୃତ୍ତି ଖଞ୍ଜି ଦେଇଥାଆନ୍ତି ।

ରାଜାଙ୍କର ମନ୍ତ୍ରଗୁରୁ ଥିଲେ ସହରର ରାଧାକାନ୍ତ ମଠର ମହନ୍ତ । ସେ କାଳର ମହନ୍ତ ଭାରି ବିଦ୍ୟା ଅନୁରାଗୀ ଥିଲେ । ସେ ୧୫/୨୦ ଜଣ ଛାତ୍ରଙ୍କୁ ମଠରେ ରହିବାକୁ ଘର ଦେଲେ । ସେମାନଙ୍କର ଖାଇବା ପିଇବାର ସୁବିଧା କଲେ । ଲୁଗାପଟା ଦେବା ଛଡ଼ା ବାକି ଅଧିକ ଦରମା ଦେବାର ଦାୟିତ୍ୱ ମଧ୍ୟ ନେଲେ । ପର୍ବପର୍ବାଣି ଦିନମାନଙ୍କରେ ରାଜାଙ୍କ ତରଫରୁ ହଷ୍ଟେଲ୍ ଛାତ୍ରଙ୍କ ପାଇଁ ଖାଇବା ଜିନିଷ ପଠାଇ ଦିଆଯାଏ ।

## ପଢୁଆ ପିଲାଙ୍କୁ ସବୁ ଛାଡ଼

ଭଲ ଛାତ୍ରମାନଙ୍କର ଭବିଷ୍ୟତ କଥା ରାଜା ଆଗ .ବୁଝୁଥିଲେ । ରାଜାଙ୍କର ଜଣେ ବିଶ୍ୱାସୀ ବାରିକ ଥିଲେ । ତାଙ୍କ ପୁଅ ଖୁବ ଭଲ ପାଠ ପଢୁଥିଲା । ତା'ର ପାଠପଢ଼ାର ସବୁ ସୁବିଧା ରାଜା କରେଇ ଦେଲେ । ସେ ମାନ୍ଦ୍ରାଜ ଗଲା । ସେଇଠି ବି.ଏ. ପଢ଼ିଲା । ରାଜା ସେଥିପାଇଁ ବୃତ୍ତି ଖଞ୍ଜିଦେଲେ । ନିଜେ ଯାଇ ସେ କେମିତି ପଢୁଛି ସେ କଥା ବୁଝୁଥିଲେ ।

ମାନ୍ଦ୍ରାଜରେ ରାଜା ଥାଆନ୍ତି । ଦିନେ ଦେଖିଲେ ପିଲାଟି କଲେଜରୁ ଚାଲି ଚାଲି ବସାକୁ ଫେରୁଛି । ପଚାରି ବୁଝିଲେ ଯେ କଲେଜ ପାଖରେ ଘର ନ ମିଳିବାରୁ ସେ ଖଣ୍ଡେ ଦୂରରେ ରହୁଛି । ନିତି ସେ ଚାଲି ଚାଲି

କଲେଜ ଯାଏ ଓ ଫେରେ । ସେଥିରେ ତା'ର ଦୈନିକ ଦୁଇଘଣ୍ଟା ସମୟ ଯାଏ । ସମୟ ପାଇଲେ ବି ଛୁଟିଦିନରେ ସେ କଲେଜ ପୁସ୍ତକାଗାରକୁ ଯାଇପାରେନାହିଁ ।

ତା'ପରଦିନ ପିଲାଟି କଲେଜକୁ ବାହାରିବା ବେଳକୁ ରାଜା ଯାଇ ତା ବସାରେ ହାଜର । ଗୋଟାଏ ନୂଆ ସାଇକେଲ ତାଙ୍କ ମଟର ଗାଡ଼ିରେ ଲଦାହୋଇଛି । ସେଇଟି ଛାତ୍ରକୁ ଦିଆଗଲା । ରାଜା ଉପଦେଶ ଦେଲେ ମନ ଦେଇ ପାଠ ପଢ଼ । ଯେମିତି ଆମ ରାଜ୍ୟର ଟେକ ରଖିବ । ଗୌରବର ସହିତ ସେ ପିଲାଟି ବି.ଏ. ପାସ କଲା । ତାଙ୍କ ନାମ ଗୋପୀନାଥ ବେହେରା । ମାନ୍ଦ୍ରାଜ ପ୍ରଦେଶରେ ସେ ଡେପୁଟି କଲେକ୍ଟର ହେଲେ । ପରେ ଓଡ଼ିଶା ଆସି ଗଞ୍ଜାମ ଓ କୋରାପୁଟର ଜିଲ୍ଲାପାଳ ହୋଇଥିଲେ ।

## ସଂଗୀତ ଓ ନାଟକ କଳାରେ ଆଗ୍ରହ

ସଙ୍ଗୀତ ଓ ନାଟକରେ ପାରଳାଖେମୁଣ୍ଡିର ନାଆଁ ଡାକ ଥାଏ । ସହରର ପଦ୍ମନାଭ ରଙ୍ଗମଞ୍ଚ ଓଡ଼ିଶାରେ ପ୍ରଥମ ବୋଲି ଜାଣିବାକୁ ମିଳେ । ଗୋପାଳକୃଷ୍ଣ ହରିବନ୍ଧୁ ଓ ଗୌରହରି ସଙ୍ଗୀତ ରଚନା କରି ଲୋକଙ୍କର ଆଦର ଲାଭ କରିଥିଲେ । କଲେଜରେ ଉତ୍ସବ ଦିନମାନଙ୍କରେ ଓଡ଼ିଆ, ତେଲୁଗୁ, ଇଂରେଜି ନାଟକମାନ ପରିବେଷଣ କରାଯାଉଥିଲା । ନାଟକରେ ରାଜା ନିଜେ ମଧ୍ୟ ମିଶୁଥିଲେ ।

## ଓଡ଼ିଆ ଭାଷାର ଉନ୍ନତି ପାଇଁ କାମ

ସେତେବେଳେ ପାରଳାଖେମୁଣ୍ଡି ସହିତ ଗଞ୍ଜାମ ଜିଲ୍ଲା ମାନ୍ଦ୍ରାଜ ପ୍ରଦେଶରେ ଥିଲା । ଜିଲ୍ଲାର ସବୁ କୋଟ କଚେରିରେ ଓଡ଼ିଆ ଚଳୁ

ନଥାଏ । ସେଥିପାଇଁ କୃଷ୍ଣଚନ୍ଦ୍ର ଓଡ଼ିଆ ଭାଷାକୁ ବଡ଼ କରିବାକୁ ମନ ଦେଲେ । ଓଡ଼ିଶାର ଜଣେ ନାମଜାଦା ପଣ୍ଡିତ ଗୋପୀନାଥ ନନ୍ଦ । ସେ ପାରଳା କଲେଜରେ ସଂସ୍କୃତ ଅଧ୍ୟାପକ ଥିଲେ । ଓଡ଼ିଆରେ ଖଣ୍ଡେ ଅଭିଧାନ ଓ ଆଉ କେତେଖଣ୍ଡ ବହି ସେ ଲେଖିଥାଆନ୍ତି । ଓଡ଼ିଆରେ ଭଲ ଅଭିଧାନ ଖଣ୍ଡିଏ ସେତେବେଳେ ନ ଥାଏ । ତାଙ୍କ ଅଭିଧାନଟି ଥିଲା ନୂଆ ଧରଣର । ଶବ୍ଦଟି କେଉଁ ମୂଳ ଶବ୍ଦରୁ ଆସିଛି ତାହା ଅଭିଧାନରେ ଲେଖାଥାଏ । ଏହା ରାଜାଙ୍କ ମନକୁ ଖୁବ୍ ପାଇଲା । ଅଭିଧାନ ଛପା ପାଇଁ ସେ ଟଙ୍କା ପଇସା ସାହାଯ୍ୟ ଦେଲେ ।

ପଣ୍ଡିତଙ୍କର କେତେକ ବହି ରାଜାଙ୍କର ଛାପାଖାନାରେ ଛପା ହେଲା । ସେ ସବୁ ବହି ଯେପରି ସୁବିଧାରେ ବିକ୍ରି ହୋଇପାରିବ ତା'ର ବ୍ୟବସ୍ଥା ରାଜା କରିଥିଲେ । ଛପା ଆଗରୁ ତା'ର ଶୁଦ୍ଧ ନକଲ କରିବା ଦରକାର । ଏଇ କାମ କରିବାକୁ ରାଜା ପଣ୍ଡିତଙ୍କୁ ପୂରା ଦରମାରେ ଛଅମାସରୁ ଛୁଟି ମଞ୍ଜୁର କଲେ । ଅଭିଧାନ କଟକରେ ଛପାଗଲା ।

ଗୋପାଳକୃଷ୍ଣ ପଟ୍ଟନାୟକ ପାରଳାଖେମୁଣ୍ଡିର ବୈଷ୍ଣବ ଭକ୍ତକବି । ତାଙ୍କର ଗୀତସବୁ ଓଡ଼ିଶାର ଚାରିଆଡ଼େ ବୋଲା ଯାଉଥାଏ । ସେ ସବୁରେ କେତେ ଭୁଲ ଭଟକା ରହି ଯାଇଥାଏ । ସେସବୁ ଠିକ୍ କରି ରାଜା ନିଜ ଖରଚରେ ଗୋପାଳକୃଷ୍ଣ ପଦାବଳୀ ଛପାଇଲେ । ଭଲ ବିକ୍ରି କେମିତି ହେବ, ଚାରିଆଡ଼େ କିପରି ଆଦର ବଢ଼ିବ, ଏଥିପାଇଁ ସବୁ ସୁବିଧା ସେ କରିଦେଲେ । ଆଉ ଦି'ଜଣ ଥିଲେ ପାରଳାର ବୈଷ୍ଣବ କବି, ଗୌରହରି ଓ ହରିବନ୍ଧୁ । ସେମାନଙ୍କର ଗୀତ ମଧ୍ୟ ଚାରିଆଡ଼େ ବୋଲାଯାଉଥାଏ । ସେ ସବୁ ଗୀତମାନ ସଂଗ୍ରହକରି ପଦାବଳୀ ଦି'ଖଣ୍ଡ ନିଜ ଛାପାଖାନାରେ ରାଜା ଛପାଇଲେ । ଶସ୍ତାରେ ଯୋଗାଇ ଦେଲେ ।

ପୁରୀରେ ଜଣେ ନାମଜାଦା ଓକିଲ ଥାଆନ୍ତି । ତାଙ୍କ ନାଁ ଜଗବନ୍ଧୁ ସିଂହ । ଟାଣୁଆ ଦେଶସେବକ ସେ । ପ୍ରାଚୀନ ଉତ୍କଳ ବୋଲି ତାଙ୍କର ଖଣ୍ଡେ ବହି ଲେଖାଯାଇଥାଏ । ଓଡ଼ିଶାର ପଞ୍ଚ ଗଉରବର ବଡ଼େଇ କଥା ସେଥିରେ ଲେଖାଥାଏ । ରାଜାଙ୍କ ଇଚ୍ଛା ଲୋକେ ଏସବୁ ବହି ପଢ଼ନ୍ତୁ ବୁଝନ୍ତୁ । ବହି ଛପା ପାଇଁ ରାଜା ସାହାଯ୍ୟ ଦେଲେ ।

ପୁରୁଣା ଓଡ଼ିଆ ଗୀତ କବିତା ପୋଥିମାନ ମଗେଇ ନିଜ ଛାପାଖାନାରେ ସେସବୁ ଛପାଯିବାର ବ୍ୟବସ୍ଥା କଲେ । ଲୋକଙ୍କ ପାଖରେ ବହି ପହଞ୍ଚିବାର ସୁବିଧା କରିଦେଲେ । ଏହାଦ୍ୱାରା ଲୋକଙ୍କର ପଢ଼ା ଆଗ୍ରହ ବଢ଼ିଲା । ବହି ମଧ୍ୟ ଭଲ ବିକ୍ରି ହେଲା ।

ସିଂହଭୂମି ଓଡ଼ିଆ ମୂଳକ । ସେଠାରେ ଓଡ଼ିଆ ପାଠ ପଢ଼ାର ସୁବିଧା ନଥାଏ । ପଣ୍ଡିତ ଉତ୍କଳମଣି ଗୋପବନ୍ଧୁ ଓ ପଣ୍ଡିତ ଗୋଦାବରୀଶଙ୍କ ଭଳିଆ ଟାଣୁଆ ନେତା ଲାଗିଥାଆନ୍ତି କେମିତି ସେଠାରେ ଓଡ଼ିଆ ଭାଷା ରହିବ । ସେଥିପାଇଁ ରାଜା ଆଗଭର ହେଲେ । ସେ ଟଙ୍କା ପଇସା ସାହାଯ୍ୟ ଦେଇ ଓଡ଼ିଆ ଭାଷା ବଞ୍ଚେଇ ରଖିବାରେ ସାହାଯ୍ୟ କଲେ ।

## କାରଖାନା ବସିଲା

ଇଂରେଜ ସରକାର ବେଳର କଥା । ଆମ ଲୋକଙ୍କୁ ଲୁଣ ମାରିବା ମନା ଥାଏ । ବିଲାତି ଲୁଣ କିଣିବାକୁ ପଡୁଥାଏ । ଗାନ୍ଧି ମହାତ୍ମା ଏଥିପାଇଁ ଲଢ଼ିଲେ । ଲୁଣମାରିବା କଟକଣା ଉଠିଗଲା । ଶସ୍ତା ଆଉ ସୁବିଧାରେ ଲୁଣ ଯୋଗାଇଦେବାକୁ ରାଜା ଗୋଟିଏ ଲୁଣ କାରଖାନା ବସେଇଲେ । ବହୁତଲୋକଙ୍କୁ କାମ ମିଳିଲା । ଭଲ କିସମର ଧଳା ଲୁଣ କାରଖାନାରୁ ବାହାରିଲା । ଓଡ଼ିଶାରେ ଏହାର ଆଦର ହେଲା । ରାଜ୍ୟ ବାହାରକୁ ଏମିତିକି ମାନ୍ଦ୍ରାଜ ଯାଏ ଏ ଲୁଣ ପଠାଗଲା । ଭଲ ବିକ୍ରି ହେଲା । ଆୟ ବଢ଼ିଲା ।

ପାରଳାଖେମୁଣ୍ଡି ସହରରେ ରାଜା ଗୋଟିଏ ଲୁହା କାରଖାନା ବସେଇଲେ । ଚାଷ କାମ ପାଇଁ ଜାତିଆ ଲୁହାରେ ତିଆରି ଲଙ୍ଗଳ, କୋଡ଼ି, କୋଦାଳ, ଦାଆ, କଟୁରି, ଶାବଳ ଓ ହାତ ହତିଆର ସେଇଠି ତିଆରି ହେଲା । ଚାଷୀଙ୍କୁ ତାହା ଶସ୍ତାରେ ମିଳିଲା । ଚାଷ କାମକୁ ସୁବିଧା ହେଲା ।

**ରାସ୍ତାଘାଟ ତିଆରି**

ଏବେକାର ପରି ସେତେବେଳେ ମୁଖ୍ୟମନ୍ତ୍ରୀ ପଦ ନଥିଲା । ଥିଲା ପ୍ରଧାନମନ୍ତ୍ରୀ ପଦ । ରାଜା କୃଷ୍ଣଚନ୍ଦ୍ର ଓଡ଼ିଶାର ପ୍ରଧାନମନ୍ତ୍ରୀ ଥାଆନ୍ତି । ସେ ନାନା ଜାଗାକୁ ଗସ୍ତରେ ଯାଆନ୍ତି । ଶାସନ କାର୍ଯ୍ୟ ବୁଝାସୁଝା କରନ୍ତି । ଥରେ ସେ ନିଜ ଇଲାକାକୁ ଗସ୍ତରେ ଆସିଲେ । ପାରଳାଖେମୁଣ୍ଡିରେ କାଶୀନଗର ଗୋଟିଏ ବଡ଼ ପେଣ୍ଠ ଜାଗା । ସେଠାକୁ ଯିବା ରାସ୍ତା କଚା । ଓଡ଼ିଶା ସରକାର ତାକୁ ପକ୍କା କରନ୍ତୁ ବୋଲି ଲୋକେ ତାଙ୍କ ପାଖରେ ଗୁହାରିକଲେ । ରାଜା ଉତ୍ତରରେ କହିଲେ, ''ମୁଁ ସମଗ୍ର ଓଡ଼ିଶାର ମନ୍ତ୍ରୀ । ସରକାରୀ ପଇସା ମୋ ନିଜ .ଇଲାକାରେ ଖରଚ କଲେ ଅନ୍ୟମାନଙ୍କ ନଜରରେ ମୁଁ ଛୋଟ ହୋଇ ଯିବି ନାହିଁ କି ? ତମେମାନେ କଣ ଏଇଆ ଚାହୁଁଛ ?'' ଲୋକେ ନିଜର ଦାବି ଉଠେଇ ନେଲେ । ପରେ ରାଜା ନିଜ ପଇସାରେ ସେଇ ରାସ୍ତାକୁ ପକ୍‌କା କରିଥିଲେ ।

ତାଙ୍କ ବାପାଙ୍କ ଅମଳର କଥା । ସେତେବେଳେ ରେଳକଂପାନି ଦ୍ୱାରା କଲିକତା ମାନ୍ଦ୍ରାଜ ରେଳଲାଇନର କାମ ହେଉଥାଏ । ନଉପଧା ଷ୍ଟେସନରୁ ଗୋଟିଏ ପାଡି ରେଳଲାଇନ ତିଆରି ସରିଥାଏ । ସେଇଟା ପାରଳାଖେମୁଣ୍ଡି ଯାଏ ଥିଲା । ରାଜା ତାକୁ ବତିଶମାଇଲ ଦୂର ଗୁଣପୁର

ଯାଏ ବଢ଼େଇ ଦେଲେ । ସେଥିରେ ଅଠରଲକ୍ଷ ଟଙ୍କା ଖରଚ କଲେ । ତାକୁ ଆଉ ଆଗକୁ ନେଇ ବଂଶଧାରା ନଦୀ ଟପି ରାୟଗଡ଼ା ଷ୍ଟେସନଠାରେ ଯୋଡ଼ିବାକୁ ମାପ ଚୂପ କଲେ । ଖରଚର ହିସାବ ତିଆରି ହେଲା । ସେତିକିବେଳକୁ ଜମିଦାରି ଉଠିଗଲା । ସେ କାମ ଆଉ ହୋଇପାରିଲା ନାହିଁ ।

**ଉତ୍କଳ ସମ୍ମିଳନୀ**

ରାଜଗାଦୀରେ ବସିବା ପରବର୍ଷ ହେଲା ଓଡ଼ିଆଙ୍କର ବର୍ଷକିଆ ମେଳା । ତାଙ୍କୁ ଉତ୍କଳ ସମ୍ମିଳନୀ କହୁଥିଲେ । ପାରଳାଖେମୁଣ୍ଡିରେ ସମ୍ମିଳନୀ ବସିଲା । ସେତେବେଳେ ଓଡ଼ିଆମାନେ ଚାରି ଗୋଟି ରାଜ୍ୟରେ ବିଛାଇ ହୋଇ ପଡ଼ିଥାଆନ୍ତି । ସବୁଠାରେ ହତାଦର ମିଳୁଥାଏ । ସେ ମେଳାକୁ ଉତ୍କଳଗୌରବ ମଧୁସୂଦନ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ଭଳିଆ ଟାଣୁଆ ନେତା ଆସିଥାଆନ୍ତି । ରାଜା ଅଭ୍ୟର୍ଥନା କମିଟିର ସଭାପତି ହେବାକୁ ମନାକଲେ । କିନ୍ତୁ ସବୁ ଦାୟିତ୍ୱ ନିଜେ ମୁଣ୍ଡାଇଲେ । ସମ୍ମିଳନୀ ଯେପରି ସୁରୁଖୁରୁରେ ସରିବ ସେଥିପାଇଁ ଲାଗିପଡ଼ିଲେ । ଜୟପୁରରେ ମହାରାଜା ବିକ୍ରମଦେବ ସେ ବରଷ ହେଲେ ସଭାପତି ।

**ଓଡ଼ିଶା ପ୍ରଦେଶ ଗଢ଼ିବାକୁ ଚେଷ୍ଟା**

ସବୁ ଓଡ଼ିଆ ଅଞ୍ଚଳକୁ ଗୋଟିଏ ପ୍ରଦେଶରେ ରଖାଯିବାକୁ ସେ ପ୍ରସ୍ତାବ ଆଣିଲେ । କଥାଟା ସବୁରି ମନକୁ ପାଇଲା । ସମସ୍ତେ ଆନନ୍ଦରେ ତାହା ଗ୍ରହଣ କରିନେଲେ । ତାଙ୍କ ପାରିବାପଣ ଦେଖି ମଧୁବାବୁ ତାଙ୍କୁ ମୁଖିଆ ସେବାକାରୀ ନାଁ ଦେଲେ । ସେଇ ଦିନୁ ସେ ଲାଗି ପଡ଼ିଲେ ଏଇ ଓଡ଼ିଆ ମୁଲକମାନ ଏକାଠି କରି ଗୋଟିଏ ପ୍ରଦେଶ କରିବାକୁ । ତାଙ୍କ

ଜୀବନର ଏଇଟି ହେଲା ସବୁଠାରୁ ବଡ଼ କାମ । ଏଇଥିପାଇଁ ସେ ଓଡ଼ିଶାବାସୀଙ୍କର ଆଦରର ପାତ୍ର ।

କିଛିଦିନ ସେ ଗଞ୍ଜାମ ଜିଲ୍ଲାବୋର୍ଡର ସଭାପତି ଥିଲେ । ତା'ପରେ ମାନ୍ଦ୍ରାଜ ଲାଟସଭାର ସଭ୍ୟ ହେଲେ । ସେତେବେଳେ ତେଲୁଗୁ ଓ ତାମିଲ ଲୋକେ ବଡ଼ ପଦ ପଦବୀରେ ଥାଆନ୍ତି । ଓଡ଼ିଆ ଅଞ୍ଚଳମାନ ମାନ୍ଦ୍ରାଜରୁ ଅଲଗା ହେବା ସେମାନେ ଚାହୁଁ ନଥିଲେ ।

ମଧୁବାବୁ ମନ୍ତ୍ରୀ ଥାଆନ୍ତି । ସେ ବିହାର ଓଡ଼ିଶା ଲାଟ ସଭାରେ ସବୁ ଓଡ଼ିଆ ଅଞ୍ଚଳ ଏକାଠି ହେଉବୋଲି ପ୍ରସ୍ତାବ ପାସ୍ କରାଇ ଦେଇଥାଆନ୍ତି । ମଧ୍ୟ ପ୍ରଦେଶରେ ଥାଏ ଓଡ଼ିଆ ଅଞ୍ଚଳ । ଓଡ଼ିଶାକୁ ସେସବୁ ଅଞ୍ଚଳ ଆସିବା କଥା । ସେ ସରକାର କହିଲେ ଏକାଠିବସି ଆଲୋଚନା କରି କଥାଟା ତୁଟାଇ ଦେବା ।

ଥରକୁ ଥର ଚେଷ୍ଟା କରି ମଧ୍ୟ ମାନ୍ଦ୍ରାଜ ଲାଟ ସଭାରେ ଫଳ କିଛିହେଲାନାହିଁ । ଶେଷରେ ଏଥିପାଇଁ ଭାରତ ସରକାର ଗୋଟିଏ କମିଟି ବସେଇଲେ । ସେଥିରେ ଜିଲ୍ଲାପାଳ ପାହିଆର ଅଫିସର ଦି'ଜଣ ଥିଲେ । ଜଣେ ଓଡ଼ିଶା ଆଡୁ ଓ ଆଉ ଜଣେ ମାନ୍ଦ୍ରାଜ ଆଡୁ । କଥା ହେଲା ଏମାନେ ଗସ୍ତ କରିବେ । ଲୋକଙ୍କ କଥା ଶୁଣିବେ । ତା'ପରେ ଓଡ଼ିଆ ଅଞ୍ଚଳ ମାନ୍ଦ୍ରାଜରୁ ଅଲଗା ହେବ । ରାଜା କମିଟିକୁ ନିମନ୍ତ୍ରଣ କଲେ । ସେମାନେ ପାରଳାଖେମୁଣ୍ଡି ଆସିଲେ । ଲୋକଙ୍କର ମତାମତ ଶୁଣିଲେ । ରାଜାଙ୍କର କୁଣିଆ ହୋଇ ଆଦର ପାଇଲେ । ସେମାନେ ବୁଝିଲେ ଯେ ବହୁଦିନ ହେଲା ଓଡ଼ିଆମାନେ ଯାହା ଦାବି କରୁଛନ୍ତି ତାହା ଉଚିତ କଥା । ସେମାନେ ସେଇକଥା ଲେଖି ସରକାରଙ୍କୁ ଜଣେଇଦେଲେ । ମାନ୍ଦ୍ରାଜର

ବିଶାଖପାଟଣା ଓ ଗଞ୍ଜାମ ଜିଲ୍ଲାର ଓଡ଼ିଆ ଅଞ୍ଚଳ ପାହାଡ଼ିଆ ମାଳ ଜାଗା ଓଡ଼ିଶାରେ ମିଶୁ । ସମୁଦ୍ର ଉପକୂଳ ଅଞ୍ଚଳରେ ତେଲଗୁମାନେ ଭାରି ପ୍ରତାପୀ । ସେଇମାନଙ୍କ କଥାରେ ଗୁଡ଼ିଏ ଖାଣ୍ଟି ଓଡ଼ିଆ ଅଞ୍ଚଳ ମିଶିବା କଥା ସେମାନେ ଲେଖିଲେ ନାହିଁ ।

ସେତେବେଳେ ସବୁଦଳ ଦାବି କରୁଥାଆନ୍ତି, ଇଂରେଜମାନେ ଦେଶ ଲୋକଙ୍କୁ ବେଶି ଦାୟିତ୍ୱ ଦିଅନ୍ତୁ । ସେମାନେ ନିଜ ଶାସନ ନିଜେ କରନ୍ତୁ । ସେଇଥିପାଇଁ ବିଲାତ ସରକାର ଗୋଟିଏ ଟାଣୁଆ କମିଶନ ବସେଇଲେ । ସାଇମନ ସାହେବ ତା'ର ସଭାପତି । ତାକୁ କହନ୍ତି 'ସାଇମନ କମିଶନ' । ପୂରା ଭାରତ ବର୍ଷରେ କଂଗ୍ରେସ ସବୁଠାରୁ ବଡ଼ ଦଳ । କଂଗ୍ରେସ ଲୋକେ କମିଶନକୁ ବିରୋଧ କଲେ । ମାତ୍ର ପାରଳାରାଜାଙ୍କ ଭଳିଆ ଓଡ଼ିଆ ନେତା କେତେଜଣ ମନକୁ ଏହା ପାଇଲା ନାହିଁ । ସେମାନେ କହିଲେ ଆମର ଗୋଟିଏ ନିଜର ପ୍ରଦେଶ ଆଗ ଦରକାର । ତା'ପରେ କ୍ଷମତା ଦେବାନବା କଥା ଉଠିବ । ଦେଶର ଚାରିଆଡ଼େ 'ଫେରିଯାଅ କମିଶନ' 'ଫେରିଯାଅ ସାଇମନ' ରଡ଼ି ଶୁଭୁଥାଏ । ସେତିକିବେଳକୁ ସେମାନେ ଓଡ଼ିଆଙ୍କ ପାଖରୁ ଆଦର ପାଇଲେ । ଓଡ଼ିଆଙ୍କ କଥା ସେମାନଙ୍କର ମନ କିଣିନେଲା । ସେମାନେ ଓଡ଼ିଆଙ୍କୁ କଣ ସୁବିଧା ଦେବେ, ସେଥିପାଇଁ ଗୋଟିଏ ଛୋଟକୋଟର କମିଟି ବସେଇଲେ ।

ପରେ ବିଲାତରେ ପ୍ରଧାନମନ୍ତ୍ରୀ ହେଲେ ଅଟଲି ସାହେବ । ସେ କମିଟିର ମୁଖିଆ ହେଲେ । ସେମାନଙ୍କ ରିପୋର୍ଟ ଆସିଲା । ବିଲାତର ପାର୍ଲ୍ୟାମେଣ୍ଟରେ ଏକଥା ପଡ଼ିଲା । କେମିତି ସବୁ ଓଡ଼ିଆ ଅଞ୍ଚଳ ଏକ ହେବ । ଓଡ଼ିଆଙ୍କର ଦୁଃଖ ଘୁଞ୍ଚିବ । କଂଗ୍ରେସ ମନାକଲା । ବିଲାତକୁ

ତାଙ୍କ ତରଫରୁ କେହି ଯିବେ ନାହିଁ । ମଧୁବାବୁ ଏବେ ବୁଢ଼ା । ତାଙ୍କର ଯିବାରେ ଅସୁବିଧା । କନିକାର ରାଜା ବିହାର ଓଡ଼ିଶାରେ ମନ୍ତ୍ରୀ ଥାଆନ୍ତି । ସେ ଜଣେ ଟାଣୁଆ ନେତା । ରାଜା କୃଷ୍ଣଚନ୍ଦ୍ରଙ୍କୁ ପ୍ରତିନିଧି ଭାବେ ବିଲାତ ଯିବାକୁ ବିହାର ଓଡ଼ିଶା ଲାଟ ସଭା ବାଛିଲେ । ରାଜା ମଧ ଖୁସିରେ ସେ ଦାୟିତ୍ୱ ନେଲେ । ବିଲାତ ଯିବେ । ସବୁ ଓଡ଼ିଆ ଅଞ୍ଚଳ ଗୋଟିଏ ହେବାକୁ ଦାବି କରିବେ । ଯାହା କଷ୍ଟ ପଡୁ ପଛକେ ସେ ଏଥିରୁ ଓହରିବେ ନାହିଁ । ତାଙ୍କୁ ଯିବାବେଳେ ଟିକିଟର ରାଜା ଭେଟିଲେ । ତାଙ୍କ ବୟସ ଅଳ୍ପ । ସେ କହିଲେ ବିଲାତ ଆପଣ ଯାଉଛନ୍ତି । ଖାଲି ହାତରେ ଯେମିତି ଲେଉଟି ନ ଆସନ୍ତି । ରାଜା କୃଷ୍ଣଚନ୍ଦ୍ର କହିଲେ "ମୁଁ ଗଙ୍ଗବଂଶର କ୍ଷତ୍ରୀୟ । ଯୁଦ୍ଧକୁ ଯାଉଛି, ଲଢ଼େଇ ହେଉଛି ଓଡ଼ିଆ ପ୍ରଦେଶ ଗଢ଼ିବାପାଇଁ । ଗଙ୍ଗବଂଶୀ ଯୁଦ୍ଧରେ ହାରିଗଲେ ଗଡ଼କୁ ଲେଉଟେ ନାହିଁ ।" ମୁଁ ସେମିତି ହାରିଗଲେ ଆଉ ଲେଉଟିବି ନାହିଁ । ଦେଶ ତମାମ ଏ କଥାଟା ଚହଲ ପକାଇଦେଲା ।

ରାଜା ବିଲାତ ଯିବାର ସବୁ ଆୟୋଜନ ହେଲା । ଓଡ଼ିଆ ଲୋକ ତାଙ୍କର ଭାଷା ଅଲଗା । ଚାଲିଚଳଣ ରୀତିନୀତି ଭିନ୍ନେ । ସାହେବମାନଙ୍କୁ ଏଇଟା ଜଣେଇଦେବା ହେଲା ତାଙ୍କର ପ୍ରଥମ କାମ । ଏଇଥିପାଇଁ ସେ ଜାହାଜରେ ଯିବାବେଳେ ସାଙ୍ଗରେ ଧରିଲେ ଜଗନ୍ନାଥ ମହାପ୍ରଭୁଙ୍କର ଚିତ୍ରପଟ, ମହାପ୍ରସାଦ । ମାଣିକେଶ୍ୱରୀ ପ୍ରସାଦ । ନିଜର ରାଜପୋଷାକ ପାଟଯୋଡ଼ ପାଟ ଛତି । ଗଙ୍ଗାଜଳ । ଯୋଡ଼ିମହୁରି ବାଦ୍ୟ । ଓଡ଼ିଆଙ୍କ ଖାଦ୍ୟ ତିଆରି କରି ପାରୁଥିବା ସୁଆର ନିଜର ଅନୁଗତ କର୍ମଚାରୀ କେତେଜଣଙ୍କୁ ସାଙ୍ଗରେ ନେଲେ । ସବୁ ଓଡ଼ିଆଲୋକେ ତାଙ୍କର ଶୁଭ ମନାସିଲେ । ତାଙ୍କ ପାଇଁ ପ୍ରାର୍ଥନା କଲେ । ଯିବା ଆଗରୁ ଓଡ଼ିଆମାନେ ତାଙ୍କୁ ଗୋଟିଏ ସଭାକରି ବିଦା କଲେ ।

ସେ ଦେଖିଲେ ବିଲାତରେ ଖରଚ ପାଇଁ ତାଙ୍କ ପାଖରେ ମୋଟେ ପାଞ୍ଚଲକ୍ଷ ଟଙ୍କା ଅଛି । ସେତେବେଳକୁ ବହୁତ ଟଙ୍କା ରାଜ୍ୟପାଇଁ ଖରଚ କରି ସାରିଲେଣି । ବିଲାତରେ ଟଙ୍କାର ଅଭାବ ପଡ଼ିପାରେ । ଏଇଆ ଭାବି ସେ ବ୍ରଜସୁନ୍ଦର ଦାସଙ୍କୁ ଋଣ କରେଇ ଦେବାକୁ କହିଲେ । ସେତେବେଳେ ବ୍ରଜସୁନ୍ଦର ଦାସ ମଧ୍ୟ ଥିଲେ ଜଣେ ଟାଣୁଆ ନେତା ଓ ଦେଶ ସେବକ ।

ସେ କହିଲେ ଆପଣ ଗଜପତି, ରାଜ୍ୟର ରାଜା । ଜଣେ ସାମାନ୍ୟ ଲୋକପରି ମହାଜନଠାରୁ ଟଙ୍କା ଋଣ ନେଲେ ଆପଣଙ୍କର ମାନ ହାନି ହେବ । ମୁଁ ବରଂ ଧାର ନେଇ ଆପଣଙ୍କୁ ଦେବି । ପାରଳାରାଜା ଆପତ୍ତି କଲେ । କହିଲେ- ''ମୁଁ ତ ଗଜପତି ରାଜା ଭାବରେ ଏ ଋଣ କରୁନାହିଁ । ଉତ୍କଳ ମୋର ଜନନୀ । ସେ ଖଣ୍ଡ ଖଣ୍ଡ ହୋଇ ପଡ଼ିଛି । ମୁଁ ସେ ସବୁ ଏକାଠି କରି ତା'ର ଜୀବନଦାନ କରିବାକୁ ଯାଉଛି । ଏଇଟା ପବିତ୍ର କାମ । ମତେ ଆପଣ ସାହାଯ୍ୟ କରନ୍ତୁ । ବାଧା ଦିଅନ୍ତୁ ନାହିଁ ।''

ସେଇଆ ହେଲା । କଟକର ବଡ଼ ମହାଜନ ଆସିଲେ । ପାରଳାରାଜା ହାତନୋଟ କରି ଲକ୍ଷେ ଟଙ୍କା ଋଣ ନେଲେ । ତା'ପରେ ଜାହାଜରେ ଯାଇ ବିଲାତରେ ପହଞ୍ଚିଲେ । ଦଳବଳ ସବୁ ସାଙ୍ଗରେ । ଆଗରୁ ଗୋଟିଏ ପେଣ୍ଠ ଜାଗା ଦେଖି ସେଇଠି ଘର ଭଡ଼ା ନିଆ ଯାଇଥାଏ । ରାଜା ଯାଇ ସେଇଠି ରହିଲେ । ଦିନେ ସକାଳୁ ଲଣ୍ଡନ ସହରର ଲୋକେ ଯୋଡ଼ି

ମହୁରି ଶବ୍ଦ ଶୁଣିଲେ । ସେମାନଙ୍କ ପାଇଁ ଏକ ନୂଆ କଥା । ପଚରା ଉଚରା କରି ସେମାନେ ବୁଝିଲେ ଭାରତରୁ ଜଣେ ରାଜା ଆସିଛନ୍ତି । ତାଙ୍କର ଭାଷା ଓଡ଼ିଆ । ସବୁ ଓଡ଼ିଆ ଲୋକଙ୍କୁ ଗୋଟିଏ ମୁଲକରେ ରଖାଯାଉ ଏଇକଥା ସେ ବିଲାତ ସରକାରଙ୍କୁ ଜଣାଇବାକୁ ଆସିଛନ୍ତି । ଲଣ୍ଡନରେ ସବୁ ବଡ଼ ବଡ଼ ଖବରକାଗଜରେ ଏକଥା ଛପାଗଲା ।

ପାର୍ଲିଆମେଣ୍ଟରେ କଣ ବିଚାର ହେବ, ତା'ର ତାଲିକା ହୋଇଥାଏ । ସେଥିରେ ଓଡ଼ିଶା କଥା ନଥାଏ । ମାତ୍ର ବମ୍ବେ ପ୍ରଦେଶରୁ ଅଲଗା ହୋଇ ସିନ୍ଧୁ ପ୍ରଦେଶ ଗଢ଼ା ହେବା କଥା ଥାଏ । ତାହାରି ସାଙ୍ଗରେ କୃଷ୍ଣଚନ୍ଦ୍ର ଏକଥା ଉଠାଇଲେ । ନିଜର ଦାବି କଥା ବୁଝାଇ କହିଲେ । ଓଡ଼ିଶା ପ୍ରଦେଶ ଅଲଗା ହୋଇ ଗଢ଼ାଯିବାକୁ ସ୍ଥିର ହେଲା । ଗଡ଼ଜିତି ନିଜ କାମ ହାସଲକରି ରାଜା କୃଷ୍ଣଚନ୍ଦ୍ର ଦେଶକୁ ଲେଉଟି ଆସିଲେ ।

ଯେଉଁ ଇଂରେଜ ଓଡ଼ିଶାକୁ ଖଣ୍ଡ ଖଣ୍ଡ କରି ପକାଇଥିଲେ ଦେଶ ଛାଡ଼ି ଚାଲିଯିବା ଆଗରୁ ସେମାନେ ଗୋଟିଏ ନୂଆ ଓଡ଼ିଶା ପ୍ରଦେଶ ଗଢ଼ିଦେଲେ । ତଥାପି କେତେ ଇଲାକା ରହିଲା । ଓଡ଼ିଆଙ୍କର ଆନନ୍ଦ କହିଲେ ନସରେ । ଧନ, ଜନ, ମାନ, ମହତ ସବୁ ଏଇ କାମରେ ଲଗେଇଥିଲେ ରାଜା କୃଷ୍ଣଚନ୍ଦ୍ର ।

**ଓଡ଼ିଆ ଅଞ୍ଚଳ ଓଡ଼ିଶାରେ ମିଶାଇବା ଚେଷ୍ଟା**

କାମ ମାତ୍ର ସେତିକିରେ ସରିଗଲା ନାହିଁ । ସେଇ ବରଷ ଭାରତସରକାର ପୁଣି ଗୋଟିଏ କମିଟି ବସେଇଲେ । ସେମାନେ ଓଡ଼ିଶା ରାଜ୍ୟର ସୀମା ଚିହ୍ନଟ କରିବେ । ଏ କମିଟିରେ ରାଜା କୃଷ୍ଣଚନ୍ଦ୍ରଙ୍କୁ ନିଆଗଲା । ଆଉ ଦି'ଜଣ ସଭ୍ୟ ମଧ୍ୟ ରହିଲେ । ଜଣେ ସାହେବ ତାଙ୍କ

ନାଁ ଓଡ୍‌ନେଲ । ସେ ଏହାର ସଭାପତି ହେଲେ । ରାଜା ସେମାନଙ୍କୁ ପାରଳାଖେମୁଣ୍ଡିକୁ ନିମନ୍ତ୍ରଣ କଲେ । ଲୋକଙ୍କ ଦାବି ଜଣାଇଲେ । ସାହେବଙ୍କର ରାଜାଙ୍କ ସହିତ ଆଗରୁ ପଡୁ ନଥିଲା । ଯେଉଁ ଅଞ୍ଚଳ ଓଡ଼ିଶାକୁ ଆସିବ ବୋଲି ଚିହ୍ନଟ ହୋଇଥିଲା ଓଡନେଲ ତା'ର ବିରୋଧ କଲେ । ତେଣୁ ପାରଳାଖେମୁଣ୍ଡି ଓ ଜୟପୁର ଓଡ଼ିଶାରେ ନ ରହିବାର ହେଲା । ଖାଲି ଓଡ଼ିଶା ଡିଭିଜନ ବିହାରରୁ ଆସିଲା ସିନା ହେଲେ ସିଂହଭୂମି ଆସି ପାରିଲା ନାହିଁ । ବଙ୍ଗଳାରୁ ମେଦିନିପୁର ଓଡ଼ିଆ ଅଞ୍ଚଳ ମଧ୍ୟ ଆସିବାର ହେଲା ନାହିଁ । ଖାଲି ଓଡ଼ିଶା ଡିଭିଜନ, ରାୟପୁର ଜିଲ୍ଲାର ଖଡ଼ିଆଳ ଜମିଦାରି, ଗଞ୍ଜାମ, ବିଶାଖପାଟଣା ଜିଲ୍ଲାର ମାଳ ଅଞ୍ଚଳ, ଆଣି ଓଡ଼ିଶା ପ୍ରଦେଶ କରିବାକୁ କମିଟି ମତ ଦେଲେ । ଓଡ଼ିଆ ଲୋକେ ନିରାଶ ହେଲେ । ରାଜା କୃଷ୍ଣଚନ୍ଦ୍ରଙ୍କ ଶ୍ରମ ବୃଥା ହେବାର ଜଣାପଡ଼ିଲା । ହେଲେ ସେ ସହଜରେ ହଟିବାର ଲୋକ ନଥିଲେ ।

ବ୍ରହ୍ମପୁରରେ ଓଡ଼ିଆଙ୍କର ସଭା ହେଲା । ରାଜା ପୁଣି ଅଣ୍ଟା ଭିଡ଼ିଲେ । ଆଗରୁ କୃଷି କମିଶନରେ ତାଙ୍କ ସାଙ୍ଗରେ କାମ କରିଥିବା ଲଡି ଲିନଲିଥଗୋ ସେତେବେଳକୁ ଭାରତର ବଡ଼ଲାଟ । ରାଜା ଗଲେ ତାଙ୍କୁ ଦେଖା କଲେ । ଓଡ଼ିଆଙ୍କ ଉଚିତ ଦାବି ଶୁଣାଇଲେ । ରାଜା ପୁଣି ବିଲାତ ବାହାରିଲେ । ନିଜ ଖରଚରେ ସେ ଓଡ଼ିଶାରୁ କେତେଜଣ ଟାଣୁଆନେତାଙ୍କୁ ମଧ୍ୟ ବିଲାତ ନେଇଥାଆନ୍ତି । ଜୟପୁର ସାଙ୍ଗକୁ ପାରଳାଖେମୁଣ୍ଡି ଜମିଦାରିର ମୋଟେ ତିନିଭାଗରୁ ଭାଗେ ଓ ପାରଳାଖେମୁଣ୍ଡି ସହର ବହୁ କଷ୍ଟରେ ଓଡ଼ିଶାରେ ମିଶିବାର ହେଲା ।

## ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ

ଊଣେଇଶ ଛତିଶ ମସିହା ଅପ୍ରେଲମାସ ପହିଲାଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଢ଼ା ହେଲା । ନୂଆ ପ୍ରଦେଶଟିଏ ହୋଇ ଗଲା । ବରଷକ ବାଦେ ଭୋଟ ନିଆଯିବ । ଲାଟସାହେବ ସେ ପର୍ଯ୍ୟନ୍ତ ଶାସନ ଚଳାଇବେ, ତାଙ୍କୁ ସାହାଯ୍ୟ କରିବାକୁ ଗୋଟିଏ ମନ୍ତ୍ରଣା ସଭା ରହିଲା । ରାଜା କୃଷ୍ଣଚନ୍ଦ୍ର ସେଥିରେ ରହିଲେ । ତହିଁ ପର ବରଷ ଭୋଟ ଲଢ଼େଇ ହେଲା । କଂଗ୍ରେସ ଲୋକେ ଜିତିଲେ । କିନ୍ତୁ ମନ୍ତ୍ରୀ ହେବାକୁ ରାଜି ହେଲେ ନାହିଁ । ଲାଟସାହେବ ପାରଳା ରାଜାଙ୍କୁ ସାହାଯ୍ୟ ପାଇଁ ଡାକିଲେ । ସେ ଆଉ ଦି'ଜଣଙ୍କୁ ଧରି କେଇମାସ କାମ ଚଳେଇଲେ ।

ସେତେବେଳେ ମୁଖ୍ୟମନ୍ତ୍ରୀ ପଦ ନଥିଲା । ମନ୍ତ୍ରିମଣ୍ଡଳରେ ମୁଖ୍ୟଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା । ପାରଳା ରାଜା ପ୍ରଧାନମନ୍ତ୍ରୀ ହେଲେ । ପରେ କଂଗ୍ରେସ ରାଜି ହେଲା ସେମାନେ ଇସ୍ତଫା ଦେଲେ ।

ଦି'ବରଷ ପୂରି ନାହିଁ, ବଡ଼ ଲଢ଼େଇ ଲାଗିଲା । ଜାପାନ, ଜର୍ମାନୀ ସାଙ୍ଗରେ ଇଂରେଜଙ୍କର । ଯୁଦ୍ଧରେ ସାହାଯ୍ୟ ନ କରିବାକୁ କଂଗ୍ରେସ ଇସ୍ତଫାଦେଲା । କେତେଦିନ ରାଜ୍ୟରେ ଖୋଦ୍ ଲାଟ, ଶାସନ ଚଳେଇଲେ । ପରେ କେତେଜଣ କଂଗ୍ରେସ ନେତା ମତ ବଦଳେଇଲେ । ପାରଳାରାଜାଙ୍କ ସାହାଯ୍ୟ ଚାହିଁଲେ । ଆଉଥରେ ରାଜା କୃଷ୍ଣଚନ୍ଦ୍ର ପ୍ରଧାନମନ୍ତ୍ରୀ ହେଲେ । ସରକାରଙ୍କୁ ଯୁଦ୍ଧରେ ସାହାଯ୍ୟ କଲେ । କଂଗ୍ରେସରୁ ଚାଲି ଆସିଥିଲେ ଜଣେ ଟାଣୁଆ ବୁଦ୍ଧିଆ ନେତା । ତାଙ୍କ ନାଁ ଗୋଦାବରୀଶ ମିଶ୍ର । ସେ ଶିକ୍ଷାମନ୍ତ୍ରୀ ହେଲେ । ଅଢ଼େଇ ବରଷ ଏମାନେ ଶାସନ କଲେ ।

### ଶିକ୍ଷାରପ୍ରସାର

ସେତେବେଳେ ଓଡ଼ିଶାରେ ବଡ଼ କଲେଜ କେବଳ କଟକ ଓ ପାରଳାଖେମୁଣ୍ଡିରେ ଥିଲା । ରାଜା କୃଷ୍ଣଚନ୍ଦ୍ର ଓଡ଼ିଶାର ପ୍ରଧାନ ମନ୍ତ୍ରୀ ଥିଲାବେଳେ ଅନେକ ନୂଆ ନୂଆ କଲେଜ ଖୋଲିଲେ । ମେଡ଼ିକାଲ, ସ୍କୁଲ, କଲେଜ କରେଇଲେ । ପ୍ରଧାନ ମନ୍ତ୍ରୀ ହିସାବରେ ଯାହା ଦରମା ଓ ଗସ୍ତଖରଚା ପାଇଲେ ତାକୁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଦାନ କଲେ । ଓଡ଼ିଶାରେ ଭଲ ଶିକ୍ଷା ଦିଆଯିବ ଏଇଥିପାଇଁ ସେବର୍ଷ ବିଶ୍ୱବିଦ୍ୟାଳୟ ଗଢ଼ାହେଲା । ଏହି ଦାନ ଟଙ୍କାରେ ବହୁତ ଅଭାବୀ ଛାତ୍ରଙ୍କର ଦରମା ଓ ପରୀକ୍ଷା ଫିଜ ଦିଆଗଲା ।

### ଚାଷରେ ଗବେଷଣା

ରାଜା ତ ମୂଳରୁ ଚାଷରେ ଆଗ୍ରହୀ । ସେଥିପାଇଁ ସେ ନୂଆକରି କୃଷିବିଭାଗରେ ଗୋଟିଏ ଅଧକ୍ଷ ପଦ କଲେ । ଜଣେ ବଡ଼ ଉଦ୍‌ଭିଦ ବିଶାରଦ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ ଏଇ ପଦରେ ରଖିଲେ । ଆଜିକାଲି ସାରା ଭାରତବର୍ଷରେ ଧାନ ଉପରେ ବେଶି ଗବେଷଣା ହେଉଛି, ବିଦ୍ୟାଧରପୁର ଧାନଗବେଷଣା କେନ୍ଦ୍ରରେ । ସେତେବେଳେ ଏହା ଓଡ଼ିଶା ସରକାରଙ୍କର ଗୋଟିଏ ଫାର୍ମ ହୋଇଥାଏ । ତାକୁ ସେ ଗବେଷଣା କାମପାଇଁ ଭାରତସରକାରଙ୍କୁ ଦେଇଦେଲେ । ସେଠାରେ ନୂଆ ନୂଆ କିସମର ବିହନ ବାହାର କରାଗଲା । ଲୁଣା ପାଣିରେ ହୋଇପାରିବା, ବଢ଼ି ପାଣିରେ ପଚିଯିବନାହିଁ, ଅଳ୍ପ ଦିନରେ ଅମଳ ହୋଇ ପାରିବା ଏମିତି ସବୁ । ଏ ଦିଗରେ ସେ ପ୍ରଥମେ ଚେଷ୍ଟା କରିଥିଲେ ।

## ରାଜନୀତି ଛାଡ଼ିଲେ

ଯୁଦ୍ଧ ସରିବା ଆଗରୁ ମନ୍ତ୍ରିମଣ୍ଡଳ ଭାଙ୍ଗିଗଲା । ପୁଣି ଭୋଟ ହେଲା । ସେ ଆଉ ଲଢ଼ିଲେ ନାହିଁ । ଦେଶ ସ୍ୱାଧୀନ ହେଲା । ଇଂରେଜମାନେ ଦେଶ ଛାଡ଼ି ଚାଲିଗଲେ । ଆମ ଲୋକେ ଶାସନ କେମିତି ଚାଲିବ ସେଥିପାଇଁ ଏକାଠି ବସି ଗୋଟିଏ ସଭା କଲେ । ରାଜା କୃଷ୍ଣଚନ୍ଦ୍ର ସେଥିରେ ରହିଲେ । ମାତ୍ର ଆଉ ତାଙ୍କ ମନ ରାଜନୀତିକୁ ବଳେଇଲା ନାହିଁ । ସହରରେ ରାଜାଙ୍କର ଅନେକଗୁଡ଼ିଏ ଘର ଥାଏ । ସେ ଗୁଡ଼ିକ ପାଇଁ ମ୍ୟୁନିସିପାଲିଟି ଟିକସ ଦେବାକୁ ପଡ଼େ । ଥରେ ଜଣେ ସରକାରୀ କର୍ମଚାରୀ ଭାବିଲେ ରାଜ୍ୟ ତ ଗଲା, ରାଜା ଏତେ ଟିକସ କୁଆଡୁ ଦେବେ ? ତେଣୁ ସେ ଟିକସ କମାଇ ଦେଲେ । ଖବର ପାଇ ରାଜା ସରକାରଙ୍କୁ ଜଣାଇଲେ । କହିଲେ ଟିକସ ନ ଦେଲେ ମ୍ୟୁନିସିପାଲିଟି ଭଲ ଭଲ କାମ କରିବାକୁ ପଇସା କୁଆଡୁ ଆଣିବ । ସରକାରୀ ପାଉଣା ଠିକ୍ ସମୟରେ ଅସୁଲ ଦେବାକୁ ସେ ନିଜ କର୍ମଚାରୀଙ୍କୁ ତାଗିଦ କରିଥାଆନ୍ତି । ସେ ଥାଆନ୍ତି ଜଣେ ସାଧାରଣ ଲୋକ ଭଳି । କିନ୍ତୁ ଲୋକେ ତାଙ୍କୁ ରାଜାଠାରୁ ବଳି ବେଶି ମର୍ଯ୍ୟାଦା ଦେଉଥାଆନ୍ତି । ଦେଶସେବା ପାଇଁ ପ୍ରଥମେ ଉତ୍କଳ ବିଶ୍ୱବିଦ୍ୟାଳୟ, ତା' ଉତ୍ତାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ସର୍ବୋଚ୍ଚ ଉପାଧି ଦେଲେ । ସେ କରିଥିବା କାର୍ଯ୍ୟର ତାରିଫ କଲେ । ସେ ଛୋଟ ଲୁହା କାରଖାନାଟିଏ କରିଥିଲେ । ରାଉରକେଲାରେ ବଡ଼ ଇସ୍ପାତ କାରଖାନା ବସିଲା । ପରାମର୍ଶ ଦେବାକୁ ଭାରତ ସରକାର ସେଥିରେ ତାଙ୍କୁ ଜଣେ ମୁଖିଆ କରି ରଖିଲେ ।

## ମହାଦୀପ ଲିଭିଗଲା :

ନିଜ ନଅରରେ ରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ରହୁଥାଆନ୍ତି । ସେତେବେଳେ ତାଙ୍କୁ ବୟାଅଶିବରଷ ବୟସ । ଓଡ଼ିଶା ପ୍ରଦେଶ ଗଢ଼ିବାକୁ ମନ ପ୍ରାଣ ଢାଳି ଦେଇଥିବା ଏହି ଦେଶପ୍ରାଣ ମଣିଷଟି ଉଣେଇଶ ଚଉସ୍ତରି ମସିହା ମଇମାସ ପଚିଶ ତାରିଖ ଦିନ ଏଗାରଟା ବେଳେ ଶେଷ ନିଃଶ୍ୱାସ ଛାଡ଼ିଲେ । ଓଡ଼ିଶା ସରକାର ତାଙ୍କ ପାଇଁ ଶୋକ ପ୍ରକାଶକଲେ । ଶୋକ ଛାଇଗଲା । ସବୁ ଶ୍ରେଣୀର ଲୋକେ ତାଙ୍କ ଗୁଣ ସୁମରି ତାଙ୍କୁ ଝୁରିହେଲେ । ତାଙ୍କଠାରୁ ଗୋଟାଏ ଯୁଗ ସରିଗଲା । ତାଙ୍କର ଓଡ଼ିଶା ତଥା ଓଡ଼ିଶାବାସୀଙ୍କ ପ୍ରତି ମମତା ତାଙ୍କୁ ଚିରଦିନ ଅମର କରି ରଖିବ ।

**********

